# ଧର୍ମ୍ମସଂସ୍ଥାପନା ।

ଯଶ୍ୱକାଙ୍କ ଅନୁରାଗ

ଓ

ବନବାସେ ଉଦ୍ଧରଣା ।

---

( ଅର୍ଜୁନଙ୍କୁ ସବବାଳୀ ମିଳି ବନାଇଲେ ।
( ସୁଭଦ୍ରା ସଙ୍ଗରେ ଯାଇ ଫାନ୍ଦରେ ପଡ଼ିଲେ । )

---

ଶ୍ରୀ ଗୋବିନ୍ଦ ରଥଙ୍କଦ୍ୱାରା ସଙ୍ଗୃହୀତ
ହୋଇ ପ୍ରକାଶିତ ହେଲା ।

---

C U T T A C K.

PRINTED AT THE VICTORIA PRESS.

ORISSA PRINTING CORPORATION.

1892.

ମୂଲ୍ୟ ଦୁଇପଇସା ମାତ୍ର ।

# ଅର୍ଘ୍ୟବନ୍ଦାପନା ।

ସତ୍ୟଭାମା ସମସ୍ତଙ୍କୁ । ଡାକ ଦେଲେ ଚନ୍ଦ୍ରଶାଳାପୁରକୁ ଗୋ । ବନ୍ଦାଇବା ଅର୍ଜୁନଙ୍କୁ ସଜନି ଗୋ ।୧।। ଶୁଣି ସମସ୍ତ ତରୁଣୀ । ନାନା ଅଲଙ୍କାର ଖଞ୍ଜିଲେ ଆଣି ଦେହ । ବାହାରିଲେ ପାଟରାଣୀ ସଜନି ଗୋ ।୨।। ହସ୍ତେ ଧରି ଅର୍ଘ୍ୟଥାଳୀ । କେ ଅଙ୍ଗେ କସ୍ତୁରୀ କୁଙ୍କୁମ ବୋ-ଳ ଗୋ । କେଣେ ଦେଉଛନ୍ତି ସାନ୍ଧଳ ସଜନି ଗୋ ।୩।। ନନ୍ଦରାଜାଙ୍କ ଦୁଲ୍ଲାଳୀ । ନବରଙ୍ଗେ ବେଶ ହୋଇଛନ୍ତି ବାଳୀ ଗୋ । ଥସ୍ତ ଅଛନ୍ତି ତଳ ତଳ ସୁନ୍ଦରି ଗୋ ।୪।। ବୋଲେ ସୁଭଦ୍ରା ସୁନ୍ଦରୀ । କାହିଁକି ଯାଉଛ ସକଳ ନାରୀ ଗୋ । ମୋତେ ନିଅ ସଙ୍ଗେ କରି ସଜନି ଗୋ ।୫।। ସତ୍ୟଭାମା କହେ ଧୀରେ । ଆମ୍ଭେ ଯାଉଛୁଁ ଚନ୍ଦ୍ରଶାଳାପୁରେ ଗୋ । ଅର୍ଘ୍ୟ ଦେବୁଁ ପାର୍ଥଶିରେ ସୁନ୍ଦରି ଗୋ ।୬।। ଶୁଣ ଗୋ ବନ୍ଧୁ-ବଲ୍ଲଭି । ତୁମ୍ଭ ସଙ୍ଗେ ଯିବି ଅର୍ଘ୍ୟ ମୁଁ ଦେବି ଗୋ । ଅର୍ଜୁନ ରୂପ ଦେଖିବି ସଜନି ଗୋ ।୭।। ଶୁଣ ଗୋ ସୁଭଦ୍ରା ଦେଈ । ଅର୍ଜୁନଙ୍କ ରୂପ ଦେଖିଲେ ତୁହି ଗୋ । ମଦନେ ହୋଇବୁ ବାଇ ସଜନି ଗୋ ।୮ ରୁକ୍ମିଣୀ ବୋଲନ୍ତି ସହି । କପାଁ ସୁଭଦ୍ରାକୁ କରୁଛ ନାହିଁ ଗୋ । ବାଲ୍ୟ କାଳୁ ସଙ୍ଗ ସେହି ସଜନି ଗୋ ।୯।। କେ ବୋଲେ ସମସ୍ତେ ହେବା । ସୁଭଦ୍ରାଙ୍କୁ ମଧ୍ୟେ ଘେନିଣ ଥିବା ଗୋ । ଅର୍ଜୁନଙ୍କୁ ବନ୍ଦାଇବା ସଜନି ଗୋ ।୧୦।। ଏମନ୍ତ ବଚନ କଲେ । ଚନ୍ଦ୍ରଶାଳାପୁରେ ପ୍ରବେଶ ହେଲେ ଗୋ । ଧାଇଁ ଜଗବନ୍ଧୁ ବୋଲେ ସଜନି ଗୋ ।୧୧।।

ଏଥୁ ଅନ୍ତେ କୃଷ୍ଣନାରୀ ଅର୍ଘ୍ୟ ଘେନି କରି । ଚନ୍ଦ୍ରଶାଳାପୁରେ ଯେ ପ୍ରବେଶ ସର୍ବ ନାରୀ ।୧। କୃଷ୍ଣଙ୍କର କୋଳେ ଯେ ଅର୍ଜୁନ ବସିଥିଲେ । କେ ଅର୍ଜୁନ ବୋଲି କନ୍ୟାମାନେ ନ ଜାଣିଲେ ।୨।।

ଯେତେ କନ୍ୟା ଯେ କନ୍ୟାଏ ବଞ୍ଚି ଅଛନ୍ତି । ତାହା ଶିରେ ଅର୍ଘ୍ୟ ଦେବା ବଳାନ୍ତି ଏକାଠି । ୩ ॥ କନ୍ୟାମାନଙ୍କର ଚିତ୍ତ ଜାଣି ସ୍ୱ-ଗାମୀ । ତାହାଲେ ଶ୍ରୀକର ପାର୍ଥଶିରେ କର ଦେଇ । ୪ ॥ ଅର୍ଜ୍ଜୁ-ନଙ୍କୁ କହାଇଲେ ପାଟବଣୀ ନାରୀ । ଦ୍ୱିତୀୟେ କୃଷ୍ଣଙ୍କୁ କହାଇଲେ ଅର୍ଘ୍ୟ ଧର । ୫ ॥ ଫଗୁ ପିଚକା ମାରନ୍ତି କୃଷ୍ଣ ନାରୀମାନେ । ଅର୍ଜ୍ଜୁ-ନଙ୍କୁ ଦେଖି ହୃଷ୍ଟ ହେଲେ ସର୍ବଜନେ । ୬ ॥ ଅର୍ଘ୍ୟ ଦେଇଣ ସମସ୍ତେ ବାହୁଡିଲା ବେଳେ । ସୁଭଦ୍ରା ଦେଖିଲେ ଅର୍ଜ୍ଜୁନଙ୍କ ରୂପ ଭୋଳେ । ୭ ॥ ଲେଉଟି ଲେଉଟି ଅର୍ଜ୍ଜୁନଙ୍କୁ ଗୃହେଁ ବାଳୀ । କାମା-ନଳେ ସୁଭଦ୍ରା ପଡିଲେ ମୋହେ ଗଳି । ୮ ॥ ସତ୍ୟଭାମା କୋଳ କଲେ ଧରି ସୁଭଦ୍ରାଙ୍କୁ । ବଶ୍ୟ ହୋଇଲୁ ଦେଖିଣ ଅର୍ଜ୍ଜୁନ ରୂପକୁ । ୯ ॥ ନାସ୍ତି କରୁଥିଲୁଁ ଅମ୍ଭେ ଅଭିବାର ବେଳେ । ଏବେ କି ହୋଇ-ଲୁ ଯେ ପଡିଲୁ କାମାନଳେ । ୧୦ ॥ ସୁଭଦ୍ରା ବୋଲନ୍ତି ଦେହେଁ ନାହିଁ ମୋର ଜ୍ଞାନ । ଅର୍ଘ୍ୟ ଦେଲା ବେଳୁ ଦେଖି ପୀଡୁନ୍ତି ମଦନ । ୧୧ ॥ କାମ ହେଲା ଉଗାର ଅର୍ଜ୍ଜୁନ ଦେଖି ମୁହିଁ । ଭେଟ ଯେ କରାଅ ସନ ଜଗବନ୍ଧୁ କହି । ୧୨ ॥

---

ଅର୍ଜ୍ଜୁନଙ୍କୁ ଗୋ । ଦଯ ଅଣି ମୋହର ପାଶକୁ ଗୋ । ଘୋଷା ।

ଏଥୁଁ ଅନନ୍ତରେ ସତ୍ୟଭାମା କହେ ଶୁଣ ଅଗୋ ନୃପବାଳା । ଏ ଯଦୁବଂଶରେ କଳଙ୍କିନୀ ହେଲୁ କି ବୋଲିବେ ବନମାଳୀ । ବିଧୁ-ବଦନୀଗୋ । ୧ ॥ ଛେଜିଲ ମୁଁ ଲଜ୍ଜା କଳ କୁଳ ଧ୍ୟାନ ଦେଖିଲା ବେଳୁ ଅର୍ଜ୍ଜୁନ । କହୁଛୁ ଛୋ ପାଦ ଧରି ଦିଅ ପାର୍ଥ ନ ହେଲେ ଗଲା ଜୀବନ ଗୋ । ସତ୍ୟଭାମା । ୨ ॥ ଡାକୋଇନ୍ତା ତୋହର ମାଉସୀ ଅଛଇ ଅର୍ଜ୍ଜୁନ ତୋହର ଭାଇ । ତାର ସଙ୍ଗେ ପ୍ରୀତି ବଢାଇବାକୁ ଅଶା କରୁଛୁ ତୁ ଲଜ୍ଜା ନାହିଁ । ବିଧୁବଦନୀ ଗୋ । ୩ । ପର ଅଙ୍ଗ ଲୋଭୀ ଯେଉଁ ଖାଏ ମାରି ନିତ୍ୟ କରଥାଇ ଅଶ । ପରଦାରକୁଣ୍ଡ

ଯେମାନେ କରନ୍ତି ତାଙ୍କ ଲଜ୍ଜା ଏବା କର ଗୋ । ସତ୍ୟଭାମା । ୪ ॥ ଘର ଅନ୍ନକୁ ଯେ ଅଶ୍ରଦ୍ଧା କରନ୍ତି କ୍ଷୁଧା କି ହରେ ତାଙ୍କର ॥ ପରଦାର ପୀରି ଯେମାନେ କରନ୍ତି ମରଣ ଲଜ୍ଜା ଏପାର । ବଧୂବଦନ ଗୋ । ୫ ॥ ଅର୍ଜୁନଙ୍କ ଭୁଲେ ରେଖାଏ ନ ଦେଲେ ପଶିବ ଅର୍ଜୁନ ପୁର । ଶ୍ରେଷ୍ଠର ପରଶେ ଶ୍ରେଷ୍ଠ ମୁଁ କରିବ ଲଜ୍ଜା ଭଯ୍ୟ ନାହିଁ ମୋର ଗୋ । ସତ୍ୟଭାମା । ୬ ॥ ଅଦ୍ଭୁତ କଥାଏ ଶୁଣ ନୃପବାଳ ପୂର୍ବରେ ଥିଲା ପିଙ୍ଗଳା । ଅନେକ ପୁରୁଷ ସଙ୍ଗେ ପ୍ରୀତି କରି ପିଙ୍ଗଳା ଭ୍ରଷ୍ଟ ହୋଇଲା । ବଧୂବଦନ ଗୋ । ୭ ॥ ଏଗୋ ସତ୍ୟଭାମା ଜନ୍ମୁଅଛି ମୁହିଁ ପିଙ୍ଗଳାର କଥା ଶୁଣ । ଧନୀ ପୁରୁଷକୁ ଦେଖି ଉଦ୍ଧରନ୍ତେ ପାଇଲା ସେହୁ କାରଣ ଗୋ । ସତ୍ୟଭାମା । ୮ ॥ ଯେ ନାରୀ ଉତ୍ତମ ରଖେ କୁଳଧର୍ମ ଶୁଣ ଏଗୋ ନୃପବାଳ । ଅସତୀ ବଡ଼ପୀ ଦୋଷୀ ହୋଇଲେ ଯଦୁବଂଶେ ହେବୁ କାଳ । ବଧୂବଦନ ଗୋ । ୯ ॥ ଭିକ୍ଷାଣୀ ଯେ ହୋଇ ଲଜ୍ଜା ତାର କାହିଁ ବଡ଼ପଣେ ଯେହୁ ଯାନ୍ତି । ରୋଗୀ ଲୋକଙ୍କର ଲଜ୍ଜା କେଉଁଠାର ବୈଦ୍ୟକୁ ଅଶ୍ରେ କରନ୍ତି ଗୋ । ସତ୍ୟଭାମା । ୧୦ ॥ କାମବ୍ୟାଧିକ ଯେ ଔଷଧ କରିବା ଜଗବନ୍ଧୁ କହେ ଗୀତେ । କୃଷ୍ଣଙ୍କୁ କହିଣ ଅର୍ଜୁନ ବରିଣ ବଧୂ କରା-ଇବା ତୋତେ । ବଧୂବଦନ ଗୋ । ୧୧ ॥

---

ରାଗ ଯଥା ।

ଏଥିଅନ୍ତେ ସୁଭଦ୍ରା ଯେ ସତ୍ୟଭାମା ପାଦେ । ଭକ୍ତି କରି କହନ୍ତି ତାମର ବଚ୍ଛେଦେ । ଶଙ୍କିତ ଗୋ । ସତେ କି ଅର୍ଜୁନ ହେବ ପତି ଗୋ । ୧ ॥ ଏମନ୍ତ ସମୟେ ଯେ ପ୍ରବେଶ ବନମାଳୀ । ସତ୍ୟଭାମା ପାଦ ଧରି ଲେଖେଟି ନୃପବାଳୀ । ଦେଖି ହରି ଯେ । ସୁଭଦ୍ରା ଅଛନ୍ତି ପାଦ ଧରି ଯେ । ୨ । କୃଷ୍ଣଙ୍କୁ ଦେଖି ସୁଭଦ୍ରା ସଙ୍କୋଚ ପାଇଲେ । ବାହୁଡ଼ିଣ ନିଜଗୃହେ ପ୍ରବେଶ ହୋଇଲେ । ନୃପବାଳୀ ଯେ ।

ଅର୍ଜୁନଙ୍କ କଥା କହେ ଭଲ ଯେ । ୩ । ସତ୍ୟଭାମା କହନ୍ତି ଶୁଣ ହେ ଦାମୋଦର । ସଂକୋଚ କଥା ଏ କହିବାକୁ ଲଜ୍ଜା ମୋର । ପ୍ରାଣନାଥ ହେ । କି କହିବ ସୁଭଦ୍ରାଙ୍କ ଲୁଚ ହେ । ୪ ।। ଅର୍ଜୁନଙ୍କୁ ଦେଖିଣ ସୁଭଦ୍ରା ବଶ ହେଲେ । ଦଅ ମୋତେ ଅର୍ଜୁନଙ୍କୁ ବୋଲି କହୁଥିଲେ । ଧନ୍ୟ ଯାଦବ ହେ । ସୁଭଦ୍ରା ଯେ ମଦନେ ବିଚ୍ଛେଦ ହେ । । ୫ ।। ଗୋବିନ୍ଦ ବୋଇଲେ ଅମ୍ଭେ ଜାଣିଛୁଁ ସେ କଥା । ଅର୍ଦ୍ଧ ଦେଖା ଦେଲୁ ଯେ ସୁଭଦ୍ରା ପୋଢ ମଥା । ଅର୍ଜୁନଙ୍କୁ ଗୋ । ଲେଉଟି ପଠିକୁ ଗୃହେଁ ଥାକୁ ଗୋ । ୬ ।। ସତ୍ୟଭାମା ବୋଲନ୍ତି ଶୁଣ ହେ ହୃଷୀକେଶ । ଯୁବା କନ୍ୟା ଗୃହେ ରଖିଥିଲେ ବଡ଼ଦୋଷ । ଧର୍ମ ନାଶ ହେ । ପିତୃଗଣେ ନୁଅନ୍ତି ତରଣ ହେ । ୭ ।। ତୁମ୍ଭଙ୍କୁ ଉଚିତ କନ୍ୟା ତା କଷ୍ଟ ପଠାଅ । ଚଞ୍ଚଳ ହୋଇଣ ତାର ନିକଟକୁ ଯାଅ । ସଙ୍ଗେ ଘେନି ଗୋ । ଭେଟ ଯେ କରାଅ ଫାଲଗୁନି ଗୋ । ୮ ।। ସୋମବଂଶରେ ଯଦ୍ୟପି ହୋଇବ ସନ୍ତାନ । ବଳ ବିକ୍ରମରେ ହେବ ସେ ଅତି ପ୍ରଧାନ । ସେ କୁମର ଗୋ । ଜମ୍ବୁଦ୍ୱୀପେ ହେବ ନୃପବର ଗୋ । । ୯ ।। ସତ୍ୟଭାମା ବୋଲନ୍ତି ବଡକୁ ପଚାରିବା । ଉତ୍ସବ କରି ଅର୍ଜୁନେ ପ୍ରଦାନ କରିବା । ଶୁଣ ଏବେ ହେ । ଜଗବନ୍ଧୁ କହେ ମଧୁ ପରବେ ହେ । ୧୦ ।।

---

ଅଗସ୍ତି କହନ୍ତି ଶୁଣ ମନୁ ଦଣ୍ଡଧାରୀ । ସତ୍ୟଭାମାଙ୍କ ବଚନେ କହନ୍ତି ଶ୍ରୀହରି । ୧ ।। ଅଗୋ ସତ୍ୟଭାମା ଯାଅ ଯଶୋଦାଙ୍କ ପୁର । ଯଶୋଦା କହିବେ ବଳଦେବଙ୍କ ଗୋଚର । ୨ ।। ଦଧ ନାସ୍ତି କଲେ ସୁଭଦ୍ରାଙ୍କୁ ଘେନି ଯିବ । ଅର୍ଜୁନଙ୍କ ପୁରେ ନେଇ ଭେଟ କରାଇବ । ୩ । ସତ୍ୟଭାମାଙ୍କୁ ଏସନ କହି ଶିଘ୍ରତର । ଅର୍ଜୁନଙ୍କୁ ଘେନିଣ ରୁକ୍ମିଣୀ ପୁରେ ଯାନ୍ତି । ୪ ।। ମୁଣୋହି ବସିଲେ ଯେ ଅର୍ଜୁନ ଦେବ ହରି । ଶଯ୍ୟନ କରିଲେ ପଙ୍ଖା ପକାନ୍ତି ଯେ ନାରୀ । ୫ ।। ରୁକ୍ମିଣୀ

କାଳନ୍ଦୀ ପ୍ରିୟ ପକାନ୍ତି ଭ୍ରମର । ନନ୍ଦା ରେଜଣ ବସିଲେ ପ୍ରଭୁ ଦାମୋ-
ଦର । ୬ ॥ ଗରୁଡାଗ୍ନ ସ୍ମରଣ କଲେ ନାରାୟଣ । ରମ୍ୟକ ଦ୍ୱୀପରୁ
ମିଳିଲେ ବିନତାନନ୍ଦନ । ୭ । ଲକ୍ଷ୍ମୀଙ୍କି ଘେନିଣ ବସି ଗରୁଡ ପିଠିରେ ।
ପ୍ରବେଶ ହୋଇଲେ ହରି ଗଙ୍ଗାର ତଟରେ । ୮ ॥ କପିଳାସ କନ୍ଦରେ
ଜାଣିଲେ ଶୂଳପାଣି । ବୃଷଭ ପିଠିରେ ବସି ପାର୍ବତୀଙ୍କି ଘେନି ।
। ୯ ॥ ଗଙ୍ଗାକୂଳେ ଭେଟ ଯେ ହୋଇଲେ ହରିହର । ଈଶ୍ୱରଙ୍କ
ପାଦେ ହରି କଲେ ନମସ୍କାର । ୧୦ ॥ ଲକ୍ଷ୍ମୀ ବୋଲୁଛନ୍ତି ତୁମ୍ଭେ
ଜଗତର ନାଥ । ଯୋଗୀ ଭିକାରିଙ୍କ ପାଦେ କଲ ପ୍ରଣିପାତ । ୧୧ ॥
ଯାହା ନ ଯୋଗାଏ ମୁଖ ଚାହିଁଲେ ତାଙ୍କର । ଭିକ୍ଷା ମାଗୁଥାନ୍ତି ବୁଲି
ଏ ଦ୍ୱାର ସେ ଦ୍ୱାର । ୧୨ ॥ ଶ୍ରୀହରି ବୋଲନ୍ତି ଅମ୍ଭ ଜ୍ୟେଷ୍ଠ ଭାଇ
ସେହୁ । ତାଙ୍କୁ ଲକ୍ଷ୍ମୀ ନିନ୍ଦା ତୁମ୍ଭେ କଲ କାହିଁପାଇଁ ୧୩ ।
ପାର୍ବତୀଙ୍କ ପାଦେ ଯାଇ କର ନମସ୍କାର । ମନୋବାଞ୍ଛା ପୂର୍ଣ୍ଣ ଏକା
ହୋଇବ ତୁମ୍ଭର । ୧୪ ॥ ଲକ୍ଷ୍ମୀ ବୋଲୁଛନ୍ତି ଯୋଗୀନାଥ ଯୋଗି-
ଆଣୀ । ତା ସଙ୍ଗେ ହୋଇବ କି ମୋହର ଠାକୁରାଣୀ । ୧୫ । ସଖୀପଣ
ଛାଡିବ କହିଲେ ବୁଝିବଲେ । ତେବେ ମୁଁ ପଡିବି ପାର୍ବତୀଙ୍କ
ପାଦତଳେ । ୧୬ । ଏତେ କହି ଲକ୍ଷ୍ମୀ ବସିଲେ ପାର୍ବତୀ ଅଗ୍ରତେ ।
ଲକ୍ଷ୍ମୀ ପାର୍ବତୀ ବସିଲେ କଲେ ଏକାନ୍ତେ । ୧୭ । ଲକ୍ଷ୍ମୀ ବୋଲୁଛନ୍ତି
ଯେ ପାର୍ବତୀ ମୁଖ ଚାହିଁ । ମଧ୍ୟପର୍ବ ଭାରତରେ ଜଗବନ୍ଧୁ କହି । ୧୮ ।

---

ମୁଖରାଗ ରେ । ଲକ୍ଷ୍ମୀ ପାର୍ବତୀଙ୍କ କଳି ଶୁଣ ହେ । ବାପୁଡା ।

ଶୁଣ ହେ ସୁଜନେ ପାର୍ବତୀଙ୍କ ମୁଖ ଚାହିଁ ଲକ୍ଷ୍ମୀ କହୁଛନ୍ତି । ଭିକାରୀ
ଗୋଠା ଏ ଗଲା ସେ ଏପରି ଦେଖି ଅଛୁ ନ ପାର୍ବତୀ କି ଅମିଳା
ଗୋ । ୧ ॥ ପାର୍ବତୀ କହନ୍ତି ଭିକାରୀ ଜାଣନ୍ତି ଭିକାରିଙ୍କର
ବାରତା । କନକଦ୍ୱାରେ ରଖି । ମାଗୁଥିଲେ ଯେବେ ତାଙ୍କୁ ପଚାର ଏ କଥା
ରୁ କମଳା ଗୋ । ୨ ॥ ଦେଖିଛୁ ପାର୍ବତୀ ତାଣ୍ଡବ ନୃତ୍ୟ ଯେ କରୁ-

ବାଲ୍କି ଜଣେ ଯାଏ । ତମ୍ଭରୁ ଖଣ୍ଡେକ ଧରଣ ହସ୍ତରେ ଥେଇ ଥେଇ
ନାଚୁଥାଏ କି ଅମ୍ବିକା ଗୋ । ୩ । ଶୁଣ ଗୋ କମଳା ବୃନ୍ଦାବନେ
ନିତ୍ୟ ନୃତ୍ୟ କରୁଥିଲା ଯାଇ । ହସ୍ତରେ ମୁରଲୀ ତ୍ରିଭଙ୍ଗୀ ବେଶ
ନାଚୁଥାଏ ଥେଇ ଥୋଇ କି କମଳା ଗୋ । ୪ ।। ଲକ୍ଷ୍ମୀ ବୋଲୁଛନ୍ତି
ଶୁଣ ଗୋ ପାର୍ବତୀ ଯୋଗୀ ଜଣେ କି ଦେଖିଛୁ । ମୃଗଛାଲ ହସ୍ତେ
ଧରି ଗଲେ ପଥେ ଦେଖି କପଟ କରୁଛ କି ଅମ୍ବିକା ଗୋ । ୫ ।।
ପାର୍ବତୀ ବୋଲନ୍ତି ଯାହାର ସେ ପଢ ବସନ୍ତ ଢେ ଆଜଚର । ମୃଗ-
ଚର୍ମ ଝୁଲି ବସନେ ଜାଣନ୍ତି ତାହାଙ୍କୁ ଯାଇ ପଚାର କି କମଳା ଗୋ
। ୬ । ଶୁଣ ଗୋ ପାର୍ବତୀ ନେଙ୍ଗଟା ଲେଙ୍ଗଟି ମାରି ଜଣେ କବା
ଯାଏ । ଗଳେ ହାଡମାଳ ବଦନେ ଲେପନ ଚିତା ବୃଷଭ ଗୋଠାଏ କି
ଅମ୍ବିକା ଗୋ । ୭ । ଶୁଣ ଗୋ କମଳା ଗୋବିନ୍ଦଙ୍କର ମେଳେ ବୃଷଭ
ଗୋପ ଚଳୁଥାଇ । ଗରୁଡ଼ ଜାଣନ୍ତି ବୃଷଭର କଥା ତାହାଙ୍କୁ ପଚାର
ଯାଇଁ କି କମଳା ଗୋ । ୮ ।। ଲକ୍ଷ୍ମୀ ବୋଲୁଛନ୍ତି ଶୁଣ ଗୋ
ପାର୍ବତୀ ଦେଖିଛୁ କି ଭୂତ ଜଣେ । ମଶାଣିଭୂମିରେ ଭୂତଙ୍କର ମେଳେ
ନାଚନ୍ତି ବୁଲେ ଏକେ ତିନେ କି ଅମ୍ବିକା ଗୋ । ୯ ।। ପାର୍ବତୀ
ବୋଲନ୍ତି ଶୁଣ ଗୋ କମଳା ଭୂତ ମୁହିଁ ନ ଦେଖଇ । କଳାବୁଡ଼
ଜଣେ ବାଘକାଳୁ ଲାଗେ ତାହାକୁ ପଚାର ଯାଇ କି କମଳା ଗୋ ।
। ୧୦ ।। ପାର୍ବତୀଙ୍କ ଲକ୍ଷ୍ମୀ ଜିଣି ନ ପାରିଲେ ତହିଁରେ ଭଞ୍ଜ ହେଲେ ।
ମନେ ବିଚାରିଲେ ଏହା ମହାଦେବ ଘୀନ ଜଗବନ୍ଧୁ ବୋଲେ କି ସ୍ତୁତିରେ
ହେ । ୧୧ ।।

---

ଅଗ୍ରେ କହନ୍ତି ଶୁଣ ମନ ନୃପବର । ଧର୍ମପୁତ୍ରଙ୍କୁ ବନ୍ଦିନ କଲେକ
ଦାମୋଦର । ନୃପବର ହେ । ଚଳିଲେ ଦ୍ୱାରକା କୈଳାସର ହେ
। ୧ ।। କୃଷ୍ଣ ରାଣୀ ରୁକ୍ମିଣୀ ସତ୍ୟଭାମା ଚଳିଗଲେ । ଯଶୋଦାଙ୍କ ପାବେ
ଯାଇ ନମସ୍କାର କଲେ । ଠାକୁରାଣୀ ହେ । କଲ୍ୟାଣ କରନ୍ତୁ ନନ-

ଗଣୀ ହେ । ୨ ॥ ସତ୍ୟଭାମା ବୋଲେ ଅଳ କହିବ କଥାଏ । ଅର୍ଜୁ-
ନଙ୍କୁ ଦେଖିଣ ସୁଭଦ୍ରା କଣ୍ଠ ଧୋଏ । କ ଜଣିବା ଗୋ । ଅର୍ଜୁନେ
ସୁଭଦ୍ରା ବଭ୍ର ଦେବା ଗୋ । ୩ । ଯଶୋଦା ବୋଲନ୍ତି ଜ୍ୟେଷ୍ଠପୁଏ
ହଳଧର । ତାହାଙ୍କୁ ପଗ୍ଭରିଣ କହିବା ବଗ୍ଭାଧର । ସୁଭଦ୍ରାଙ୍କୁ ଗୋ ।
ବଭ୍ର କରାଇବା ଅର୍ଜୁନଙ୍କୁ ଗୋ । ୪ । ତୁମ୍ଭେ ଥାଅ ଆମ୍ଭ ପୁଲ ମୁ
ଅସାର ଶୁଣି । ଏତେ କହି ବଳଦେବ ପୁରେ ନନ୍ଦରାଣୀ । ଦେଖି ସମ
ହେ । ଜନନୀ ପାଦେ କଲେ ପଣାମ ହେ । ୫ । ବେନିକର
ଯୋଡ଼ି ପଗ୍ଭରନ୍ତି ହଳଧର । କମର୍ଥେ ବିଜୟ କଲ ମାତଃ ଆମ୍ଭ ପୁର ।
କହ ସତ୍ୟ ଗୋ । ଅଳ ଆମ୍ଭପୁରେ ଉପଗତ ଗୋ । ୬ ॥ ନନ୍ଦରାଣୀ
ବୋଲେ ପୁଏ ଶୁଣ ବଳଦେବ । ସୁଭଦ୍ରା ଅମୃତ ଅର୍ଜୁନଙ୍କୁ ବଭ୍ର
ହେବ । ତୋ ମନଙ୍କୁ ଯେ । ପାଇଲେ କନ୍ୟା ଦେବା ପାପଙ୍କୁ ଯେ
। ୭ ॥ ଶୁଣି ବଳରାମ କର୍ଣ୍ଣେ ପକାଇଲେ ହସ୍ତ । ପାଣ୍ଡବେ ଅଟନ୍ତି
ଗୋଲଭୁଣ୍ଡା କାଳଜାତ । ଅର୍ଜୁନଙ୍କୁ ଗୋ । ନ ଦେବା ଅମୃତ ସୁଭ-
ଦ୍ରାଙ୍କୁ ଗୋ । ୮ ॥ ବନ୍ଧପଣଙ୍କ ପାଣ୍ଡବେ କୃତଜ୍ଞ ଭାଜନ । ଅମ୍ଭେ
ବର କରିଅଛୁଁ ରାଜା ଦୁର୍ଯ୍ୟୋଧନ । ଆଗୋ ମାତ ଗୋ । ବନ୍ଧ-
ପଣେ ଯୋଗ୍ୟ କୁରୁନାଥ ଗୋ । ୯ ॥ ସୁବର୍ଣ୍ଣ ପଟ୍ଟଳି ପାଦ ପଡ଼ନ୍ତେ
ଯାହାର । କୃଷ୍ଣ ନ ଜାଣିବେ ଯେ କହିବା ବଗ୍ଭାଧର । କୁହି ଦନ ଗୋ ।
ବଭ୍ର କରାଇବା ଦୁର୍ଯ୍ୟୋଧନ ଗୋ । ବଳରାମଙ୍କର ବାଣୀ ଶୁଣି ନନ୍ଦ-
ରାଣୀ । ବାହୁଡ଼ିଣ ସତ୍ୟଭାମା ଆଗେ କହେ ବାଣୀ । ନନ୍ଦରାଣୀ ହେ ।
ଜଗବନ୍ଧୁ ମଧ୍ୟଦେବ ଭଣି ହେ । ୧୧ ।

ଏଥିଅନ୍ତେ ସତ୍ୟଭାମା ପାଶେ ନନ୍ଦରାଣୀ । କହନ୍ତି ଅର୍ଜୁନେ
ନାସ୍ତି କଲେ ହଳପାଣି । ୧ ॥ ସୁଭଦ୍ରାଙ୍କୁ ବଭ୍ର ହେବ କୁରୁ ନୃପ-
ବର । ଅର୍ଜୁନଙ୍କୁ ନାସ୍ତି କଲେ କହିବାକୁ ବର । ୨ ॥ ଏସନ ଶୁଣିଣ
ସତ୍ୟଭାମା ବାହୁଡ଼ିଲେ । ସକଳ ସଙ୍କେତ କୃଷ୍ଣ ଅଗ୍ରେ କହିଲେ । ୩ ॥
ଏସନ ଶୁଣି ବୋଇଲ ବୋଲନ୍ତି ହରି । ସୁଭଦ୍ରାଙ୍କୁ ଘେନି ଚଳ

ଅର୍ଜ୍ଜୁନଙ୍କ ପୁର । ୪ । ଦେଖିବା କେମନ୍ତେ ବଶ୍ୟ ହେବ ଦୁର୍ଯ୍ୟୋ-
ଧନ । ଗୃହରେ ଭେଟ କରାଅ ସୁଭଦ୍ରା ଅର୍ଜ୍ଜୁନ । ୫ । ଅର୍ଜ୍ଜୁନଙ୍କ
ସଙ୍ଗେ ସୁଭଦ୍ରାର ଭେଟ ହେଲା । ଦୀନ ଜଗବନ୍ଧୁ ଏହା ଗୀତରେ
ଗାଇଲା । ୬ ।

ସମାପ୍ତ ।

---

## ରାଧିକାଙ୍କ ଅନୁରାଗ ।

ଫୁଲ ମଳାସ ବୃତ୍ତେ ।

ରାଧା ଧର ସଖି କର । ବୋଲନ୍ତି ଯାଉଛ ଅନ୍ତୁ ନ କର ଗୋ । ଲାଜ
ଭୟ ଛାଡିଲି ନାଗର ସଜନି ଗୋ । ୧ । ଘନଶ୍ୟାମ ଗୁଣମାନ । ରଖି
ଅଛି କ ମୋ ଧୈର୍ଯ୍ୟ ଗୁମାନ ଗୋ । ମନ ଦନ୍ତୁ ଛୁ ଟା ସନମାନ । ସ
। ୨ । ଭୁଞ୍ଜ ମୋହିବା ମୁନିଙ୍କି । ତାଙ୍କୁ ପ୍ରୀତିପଣେ ଯୋଗ୍ୟ ମୁ ନଙ୍କ
ଗୋ । ଅଲଙ୍କାର ସେହ ଅବନୀକି ସଜନି ଗୋ । ୩ । ଶୁଣି ତାଙ୍କ
କଥା ପଦେ । ରମା ଉମା ପ୍ରାଣ ବିକବେ ପଦେ ଗୋ । ନାସା ନର-
ସିବେ ଇନ୍ଦ୍ରପଦେ ସଜନି ଗୋ । ୪ । ଅନାଇ ଯାହା ବଦନ । ପଦ୍ମ
ହେଲେ ହେବ ମୋହ ମଦନ ଗୋ । ସୁଖାନନ୍ଦ ଅମୃତସଦନ । ସ । ୫ ।
ଦେଖିଲେ ପଛ ବଢ଼ଇ । ଦମ୍ଭ ଛେକ ଅଛଇବେ ପୀନଛ ଗୋ । ନାଗ-
ନାସା ଲକ୍ଷବେ ସୁଗନ୍ଧ ସ ଗୋ । ୬ । ଗଢ ଜାଣନ୍ତେ ପଥରେ । ଦ୍ରବ
ହୋଇ ବହି ଯିବେ ପଥରେ ଗୋ । ନ ଭୁଲନ୍ତ କେ ମନମଥରେ ସ । ୭ ।
ଦନେ ମୋ ନେତ୍ରପଥରେ । ପଡନ୍ତେ ବାଙ୍କ ତ୍ରିଭଙ୍ଗ ଥରେ ଗୋ ।
ଥାଉଯାଏ ମୋ ହୃଦସ୍ଥ ଥରେ ସଜନି ଗୋ । ୮ । ଦମ୍ଭ ଲେଟେଲ ପଦ କ
ଅଣି ରଖିବ କେ ଗୃହେ ଭୁବନ ଗୋ । ମୁଢ ସାଧନ୍ତି ମାନ ଭଜ ସ
ଗୋ । ୯ । ନାହିଁ ପୂର୍ବେ ପୁଣ୍ୟ କର । ସ୍ୱମନେ ମନାଇ ନାହିଁ ଶଙ୍କର
ଗୋ । ହେବ କି କର ତାଙ୍କ କଙ୍କଣ ସ । ୧୦ । କାହିଁ ମୁଖ ଦରଶ-
ଣେ । କଣ୍ଠରେ ହେଲେ ମୋପର ପଡଣ ଗୋ । ଶୋଭ ନ ଦିଶେ ହେ

ଦାସୀପଣେ ସ । ୧୧ ॥ ମୁରଲୀ ମୁଖେ ସୁନ୍ଦର । ତୋଳା ହେଲାରବା
ରଙ୍ଗି ସୁନ୍ଦର ଗୋ । ନାହିଁ କାହିଁ ମେଦନୀ ମଧ୍ୟର ସ । ୧୨ ॥ ସ୍ମିତ
ରଙ୍ଗିମା ଅଧରେ । ତ୍ରିଭଙ୍ଗୀଛନ୍ଦରେ ମୁରଲୀ ଧରେ ଗୋ । ନାହି
ସେ ଶୋଭା ଅଧ ଊର୍ଦ୍ଧ୍ବରେ ସ । ୧୩ ॥ ଅଳଙ୍କାବୃତ ଲପନ ।
ବେଳେ ବେଳେ ଭର ହୁଏ କମ୍ପନ ଗୋ । ଦେଖି ନ ଦେଖିବ ବେ
ସ୍ବପନ ସ । ୧୪ ॥ ମକରକୁଣ୍ଡଳ ଗତ । ଶ୍ରୁତିରେ ଅଗମ୍ୟ ଶ୍ରୁତି ସ-
ଙ୍ଗତ ଗୋ । ଦେଖି ନେତ୍ର ପାଇଯାଏ ଗତ ସ । ୧୫ ॥ ଗୁଞ୍ଜ ଗୁଞ୍ଜରା
ଖଞ୍ଜିତ । ଗୋଟି ମଲ୍ଲୀବେଢା ଯୁଡା ରଞ୍ଜିତ ଗୋ । କେକୀପୁଚ୍ଛ
ତହିଁ ବସ୍ତ୍ରତ ସ । ୧୬ ॥ ଜାମୁଡାଳି ଖୋସିବାର । କିଅପର୍ଣ୍ଣ ବେଢ
ତହିଁ ଦେବାର ଗୋ । ଦମ୍ଭ ନାଶନତ ସେ ଯୁବାର ସ । ୧୭ ॥
ନାଶେ ଗଜମୋତିବଧେ । ଥୋପ ମେଳିଚ୍ଛ କାମ-ଧୀବର ଗୋ ।
ଭେଦ କରେ କେଶ-ଗଜବର ସ । ୧୮ ॥ ଭାଳେ ଚିତା ଗୋରୋ-
ଚନା । କସ୍ତୁରୀ ତିଳକ ମଧ୍ୟେ ରଚନା ଗୋ । ବନାଶକ ସେ ବାମ-
ଲୋଚନା ସ । ୧୯ ॥ କଣ୍ଠେ କଉସ୍ତୁଭ ମଣି । କଳାମେଘେ ଉଦେ କ
ଦନମଣି ଗୋ । ରତ୍ନ ହାର ନବଗ୍ରହ ମଣି ସ । ୨୦ ॥ ଶୋଭେ ପୀତ-
ବସନରେ । ବନ୍ଧୁଳ ଶୋଭେ କ ନବଘନରେ ଗୋ । ଦେଖି ମାନ
ନ ରହେ ମନରେ ସ । ୨୧ ॥ କଟିତଟରେ କଙ୍କିଣି । କଙ୍କାତ
ମଧ୍ୟର ଶୃଙ୍ଗେ ତା କଣି ଗୋ । କଳଙ୍କାରେ ମନ ହୁଏ କାଣି ସ । ୨୨ ॥
ପାଦେ ରୁଣିତ ନୂପୁର । ନାଦେ ଚମକାଏ ଅମରପୁର ଗୋ । କାହା
ହୃଦ ନୋହେ ରସପୂର ସ । ୨୩ ॥ ନଟବର ମନୋହର ।
ଦେଖିଲେ ମୋହିତ ହୋଇବେ ହର ଗୋ । ନାସ୍ତି ବାଞ୍ଛା ହେବ ଅ
ଦେହର ସ । ୨୪ ॥ ଅଳକ୍ଷ ସଂହନନର । ଶୋଭା ନର ନାସ୍ତି
ନାଗ କିନ୍ନର ଗୋ । ପୂଜାପ୍ରତିମା ସେ ମଦନର । ୨୫ ॥
କ ଣ୍ଠର ନବତରୁଣୀ । ଦେବସ୍ତ୍ରୀସ୍ତ୍ରୀ ହେବେ ସ୍ମରତେ ରଣୀଗୋ ।
ଶୋଭା ଦେଖି ରହିବେ ବାରୁଣୀ ସ । ୨୬ ॥ ସେ ଶୋଭାସ୍ପୃଷ୍ଟି

ଷାମନ୍ତ । ଅଛୁର ଚହ୍ନିରେ ଟ୍ଣା ତେମନ୍ତ ଗୋ । ଘେନ ପ୍ରୀତିଅ-
ପର୍ଣ କେମନ୍ତ ସ । ୨୭ ॥ ମୋତେ ଲଭିଳା ହୃଦରେ । ଅନୁସରି ଥାନ୍ତି
କେତେ ମଉରେ ଗୋ । ବଣ ନୋହିବ କେ ତେମନ୍ତରେ ସ । ୨୮ ॥
ମୋ ଗଢାଗଢ ବାଟରେ । ଜଂଗ ବଢିଥାନ୍ତି ସେ କପଟରେ ଗୋ ।
ମାଏ ଦରଶନ ଲମ୍ପଟରେ ସ । ୨୯ । ଲେଖନ୍ତି ଗଡଗ୍ରଥରେ ।
ପ୍ରାଣ ବ୍ରଜା ସବେ ମନମଥରେ ଗୋ । ଭୁଲୁ ମାର ମୋର ବୋଲେ
ଥରେ ସ । ୩୦ ॥ ମୋ ପାଦଚିହ୍ନ ଧୂଳକ । ବୋଳ ଦାଇନ୍ତି ସେ
ହୃଦସ୍ଥଳକ ଗୋ । ଲୁଚିଯାଇ ସେ ନେତ୍ରାବଳକ ସ । ୩୧ ॥
ଭ୍ରମରୋଲା ବନରେ । ଲେଖନ୍ତି କେତକୀ ସ୍ମୃତି ଦଳରେ ଗୋ ।
ଗନ୍ଧ ଘଟେ ଗନ୍ଧ ଏ ଦାନରେ ସ । ୩୨ ॥ ମଧୂପକ୍ଷ ମାଧବଙ୍କା । ଯେ-
ମନ୍ତ ତେମନ୍ତ ଭୁ ମୋ ଜୀବକା ଗୋ । ସ୍ୱଇଚ୍ଛାରେ ହୋଇଛି ମୁ ବନ୍ଧା
ସ । ୩୩ ॥ ଏମ୍ନା ଘଟିଲ ବନରୁ । ପାସୋଷ ନ ଗଲ ଦନେ ମନ-
ରୁ ଗୋ । ସେଠ ଅଧିକ ମୋ ଜୀବନରୁ ସ । ୩୪ ॥ କହନ୍ତି ମିଠ
ଅଗରେ । ହଂସ ଦେବ ଯାଇ ଗଙ୍ଗାସାଗରେ ଗୋ । ତଳ ହେବ
ବନ୍ଧୁ ଶ୍ରୀଅଙ୍ଗରେ ସ । ୩୫ ॥ ତାନାମ ଗାଇ ଭୃଣ୍ଡରେ । ପ୍ରୀତି ଡମ୍ବ-
ରୁ ବଜାଇ ଦାଣ୍ଡରେ ଗୋ । ଭିକ୍ଷା ମାଗୁଥିବ ବ୍ରହ୍ମାଣ୍ଡରେ ସ । ୩୬ ॥
ତାନାମ ଲେଖା ଶ୍ରୀଅରେ । ଶ୍ରୀର ହୋଇଥିବ ହୃଦ ଉପରେ ଗୋ ।
ଝାଇ ଥିବ ତାହା ସ୍ୱରୂପରେ ସ । ୩୭ ॥ କେହୁ ଯାଇ ସନ୍ନିଧିରେ ।
ଜଣାଇବ ଯେବେ କୃପାନିଧିରେ ଗୋ । ଦୟା ହୋଇବ କି ନାହିଁ
ଥରେ ସ । ୩୮ ॥ ଏହା ଯେବେ ଶୁଣାଯିବ । ପଥର ହୋଇଲେ
ତରଳି ଯିବ ଗୋ । ପଥବ୍ରତ କେହ୍ନୁ ନ ଛେଳିବ ସ । ୩୯ ॥ ଭୃଙ୍ଗ
ବୋଗ ଚନ୍ଦ୍ରମଲ୍ଲୀ । ଦେଖି ଦେଖାଇ ଠାର ଦେଇ ମଲି ଗୋ ।
ଏହା ଦେଖି କାହିଁକି ନ ମଲି ସ । ୪୦ ॥ ରଜକୀ ଚୋଷେ ଧନରେ ।
ବୋଲୁଥାନ୍ତି କେତେ ସଜମାନରେ ଗୋ । ମୋ ବସନ ଅଙ୍ଗ ଚିଲନ
ନରେ ସ । ୪୧ ॥ ମୋ ସ୍ନାନ ଜଳଘାଟରେ । ଭିଡିଲି ବୋଲି

ପବନ୍ତି ହସ୍ତରେ ଗୋ । ଛଡା କୁସୁମ କଣ୍ଟକରେ ସ । ୪୨ ॥
ଛଡାମାଳକୁ ଲୋଡାଇ । କି ସ୍ନେହରେ ନେଇ ଚୂଳେ ଗୁଡାଇ ଗୋ ।
ହେଲେ ଇନ୍ଦ୍ରେ କରନ୍ତି ବଡାଇ ସ । ୪୩ । ଚୂଡ ପଟ୍ଟପଦର ।
ହୃଦରେ ଲଗାନ୍ତି ହୋଇ କାତର ଗୋ । ବାସ ପରିଧାନ ହରଦର
ସ । ୪୪ । ଗେଡନା ତଗ୍ଧା ଗ୍ରାମରେ । ବସନ୍ତପକ୍ଷୀ ଧରନ୍ତି ଜାଲ-
ରେ ଗୋ । କେଉଁ ସୁନ୍ଦର ଷଣ୍ଢ ଫୁଲରେ ସ । ୪୫ ॥ କୁଶଳସ୍ଥ ଗାଙ୍ଗି
କରେ । ଅଦରେ ଖୋଜନ୍ତି ସେ ମସ୍ତକରେ ଗୋ । କର ନିବେଶନ୍ତି
କରଜରେ ସ । ୪୬ । ଯତ୍ନ ଅଳି କଳଜରେ । ଚିଭାନ୍ତି ପୁଣି କି ଦେନ
ମନରେ ଗୋ । ପୁଣୀ ଦେଖି ଲୋଲା ଚଞ୍ଚଳରେ ସ । ୪୭ ॥ ଶ୍ରେଣି
ପିକ କୁରଙ୍ଗକ । ଧୀରେ ନିବେଶନ୍ତି ଦକ୍ଷଗ୍ରନ୍ଥକ ଗୋ । କେଉଁ ପ୍ରଶଂସା
ହଂସଗଣଙ୍କ ସ । ୪୮ । ଦେଖିଲେ ନବ ତମାଳ । ବେକ୍ଷି ଦେଉଥାନ୍ତି
କୁସୁମମାଳ ଗୋ । କହୁଥାନ୍ତି ବୋଲ କୁଚମାଳ ସ । ୪୯ ॥ କୃଷ୍ଣ
ପଦ୍ମ ବଂଶୀଧର । ଗୋଲ ହୋଇ ଯାଉଥାଇ ଅନ୍ତର ଗୋ । କେଣ୍ଟ
ହୋଇଯାଏ ଜଳଧର ସ । ୫୦ ॥ ଏଣେ ନମତାମାନ । କରୁଛି
ଏହା କେଉଁ ଚ ଅନୁମାନ ଗୋ । ମୃତ ବେଣିନ୍ତି ଏସନମାନ ସ । ୫୧ ।
ଦେଖି କ୍ଷଣି ଜାଣି କହ । କେଉଁ ଗୁଅଣ୍ଡ ନୋହିବ ଝଙ୍କରା ଗୋ ।
ମାନସର ହେବାରଶ କଣ୍ଠ ସ । ୫୨ । ଧନ୍ତୁ ଛୁ ଗୁମ୍ଫନ କରେ । ସଖିଗଣ
ଶୁଣ ଏତେକ କର ଗୋ । କେଉଁ କରଅ ତା ପରିବ୍ରତ ସ । ୫୩
ସେ ଯେତେ ସ୍ଥିତ ରଚଇ । ହୃଦୟ ଭିତରେ ମୋର ନାଚଇ ଗୋ ।
ତାହା ଧନା କି ବଧା ବଞ୍ଚଇ ସ । ୫୪ । ବାଜୁ ନୂପୁର ଘୋଷଣ ।
ହେଲେ ହେବ ପଟ୍ଟେ ନାନା ଲକ୍ଷଣ ଗୋ । ମୃତ କଳିଣି ନନ୍ଦା ଭୂ-
ଷଣ ସ । ୫୫ ॥ ଭ୍ରମୁକୁ ଚେକ ବଦନ । ଦେଗେ ଦେଖାଅ ସେ
ଜାଗମୋହନ ଗୋ । ନ କଲେ ହେବଟି ଦହନ ସ । ୫୬ ॥ ଶୁଣି
ଧରୋଗ ଗୁରଙ୍ଗା । ସଙ୍କୀର୍ଣ୍ଣ ହୋଇଲେ ଅରତ ଗୋ । ହୃଦ
ଭିତରେ ହେଲେ କରତ ସ । ୫୭ ॥ ଘନ ଅଭିମନ୍ୟୁ ଜୀବ । ସାଧ୍

ଭାବ ଭାବ ବାହାରି ଯିବ ହେ । ସତେ ଏ ଭାଗ୍ୟ କେ ଦେଖା ଯିବ ଗୋବିନ୍ଦ ହେ । ୬୮ ।।

---

## ବନବଚନ ଚଉତିଶା ।

କହନ୍ତି ରାମଚନ୍ଦ୍ର ଶୁଣ ଗୋ ସୀତା । କାଲି ବନକୁ ଯିବି ନ କର ଚିନ୍ତା ଗୋ । କଉଶଲ୍ୟାଙ୍କ ପାଶେ ଥିବ ଏକାନ୍ତ । କର୍ମରେ ବିଧି ଲେଖିଅଛି ଏମନ୍ତ ଗୋ । ୧ । ଖରତରେ ଜାନକୀ ଉଠିଲେ ଶୁଣି । ଖରେ ବନକୁ ନାଥ କୋଦଣ୍ଡପାଣି ହେ । ଖଳ ବଚନ କେଡ଼େ ସହିବ ମୋର । ଖଳଖଳ ନୟନୁ ବହିବ ନୀର ହେ । ୨ । ଗହନ ବନେ ସଖି ନ ପାଇ ସୁଖ । ଗଲେ ତୁ ଦେବୁ ମୋତେ ଦାରୁଣ ଦୁଃଖ ଗୋ । ଗଳାମର୍କତମାଳୀ ଜନକସୁତା । ଗଜଗମନ ଗଲେ ପାଇବୁ ବ୍ୟଥା ଗୋ । ୩ । ଘୋଷୁ ମୁଁ ଥିବ ପୁତେ କାନନ ବସି । ଘୋର ବିପତ୍ତି ହେବ ଦବଧ ନାଶି ଗୋ । ଘନବରନ ନାଥ କୋଦଣ୍ଡପାଣି । ଘନ ସ୍ତନଙ୍କ ଘାତେ ଚୂରିବ ପୁଣି ହେ । ୪ । ନ କର ଚିନ୍ତା ସଖି ମୋ ପ୍ରାଣପ୍ରିୟେ । ନରେନ୍ଦ୍ରନେମା ମନେ ନ କର ଭୟେ ଗୋ । ନାହିଁ ନ କର ମୁଁ ଯେ ଯିବଇ ବନ । ନ ଗଲେ ସତ୍ୟଭଗ୍ନ ହେବ ରାଜନ ଗୋ । ୫ । ଚନ୍ଦ୍ରବଦନୀ କହେ ଅହେ ରାଘବ । ଚକୋର ତ୍ୟଜିବ କି ଚନ୍ଦ୍ରମା ଭାବ ହେ । ଚଳ ବନକୁ ମୋତେ ସଙ୍ଗରେ ନେନ । ଚିନ୍ତ ଗଲେ କି ପ୍ରାଣ ରହିବ ପୁଣି ଗୋ । ୬ । ଛନ୍ଦ କପଟ କଲେ କୈକେୟୀ ମାତା । ଛଳେ ବନକୁ ଯାଅ ବୋଇଲେ ପିତା ଗୋ । ଛନ୍ଦ କଉଣ କରାଇଲେ ସେ ସତ୍ୟ । ଛାଡିବେ ରାମ ରାଜ୍ୟ ରାଜା ଭରତ ଗୋ । ୭ । ଜନକ ଦେଲେ ଶୁଦ୍ଧ ମନରେ ଥାଇ । ଯତ୍ନେ ଯାଅ ବୋଇଲ ପ୍ରଦୀପ କୁଇ ହେ । ଜୀବନ ଯାଉ ଜପି ତୁମ୍ଭ ନାମ । ଯେବେ ତେଜିବ ପ୍ରଭୁ ଅଯୋଧ୍ୟା ଗ୍ରାମ ହେ । ୮ । ଝସନୟନୁ ନୀର ବାହାର ପୁଣି । ଝୁରିବେ ମାତା ଆଦି ସମସ୍ତ ରାଣୀ ଯେ ।

ଙ୍ଗ ବାଜିଲା ପରି ହୋଇଲେ ରାମ । ହୃଦୟ ଦହି ମୋତେ ହୋଇଲା
ବାମ । ୯ । ନୃପନନ୍ଦନ ଅହେ ଅଯୋଧ୍ୟାନାଥ । ବିରେଖ ଯୁବତୀ
ଙ୍କ ହେବ ଅନାଥ ହେ । ନବୀନ ବୟସୀ ମୁ ଅବଳା ନାରୀ । କୋ-
ମଳ ଯୋଗ୍ୟ ପଦ୍ମ ପାଦକୁ ନତ ହେ । ୧୦ । ଛୀଜା ହୃଥଗ୍ରା ଦଶ
ହୋଇଲେ ଶୋଷ । ଛୀକା ଭାଙ୍ଗିଲା ଏବେ ବନରେ ବାସ ଗୋ ।
ଛାଣ ଯେ କହୁ କୋହେ କୈକେୟୀ ମାତା । ଛାକି ଯେ ରହିଥିଲା
ଫଳ ଦେଖାଇ ଗୋ । ୧୧ । ଠାକୁର ଆଉ ନାହିଁ ତୁମ୍ଭ ବନ୍ଧୁନେ । ଠାବ
ନାହିଁ ମୋ ନବପଥ ଭୁବନେ ହେ । ଠେକେ ନାଚିଲ ବନେ ରାଜ-
କାସ୍ତୁରୀ । ଠଣ ପାଦ ଲାଗିଲା ଅହଲ୍ୟା ତରି ହେ । ୧୨ । ତୋ-
ଲା ଦଶମା ମୋଉ କନକ କେଶମା । ତାଳମୂଳ ଦନ୍ତୀ ଅତି ସୁଯମା
ଗୋ । ତରବୁ ବନେ ଗଲେ ଋଷି କୁମାର । ତାଙ୍କୁ କାହ୍ନା
ନାମେ କି ବୋଲି କହ ଗୋ । ୧୩ । ତାଲେ ନନ୍ଦାଶ କର ଯିବ କି
ବନ । ତଳ କ ଯାଇ କପାଁ ରହେ ଜୀବନ ହେ । ତାଲେ ଶୂନ୍ଦକ
ଜଳଧରଙ୍କୁ ଅଣା । ତୋଳି ଗରଳ ପ୍ରାଣ କାଢିବ ନାଶ ହେ । ୧୪ ।
ଥାଣି ଦଧାତା ମୋତେ ଏ ଦଶା କଲା । ଥଡୋ ଅଦ ମୋର କ୍ରି-
ଡାଇ ନେଲା ଗୋ । ଥଇଲି ସଖି ମୁହିଁ କହିବା ପାଇଁ । ଅନର୍ଥ
କଥା ମୋତେ କହୁ କିପାଇଁ ଗୋ । ୧୫ । ଥୋ ପରେ ବିଶ୍ୱନାଥ
ପ୍ରସନ୍ନ ହେଲେ । ତୁମ୍ଭର ଦାସୀ ହେବି ବୋଲି ବୋଇଲେ ଗୋ ।
ତୁମ୍ଭେ ନ ଯାଉ ଅଗ ଯିବି ମୁଁ ବନ । ଭଜ ଭୁବନେ ସ୍ୱଦ କାଢ଼ିଥ ମାନ
ଗୋ । ୧୬ । ଥରେ ନ ଦେଖ କିପାଁ ମୋର ଦଇବା । ଥଳହର
ହେଉଛ ନମ୍ରନ ଦେଖ ଗୋ । ଥାଅ ନିଶ୍ଚିନ୍ତ ହୋଇ ଅଯୋଧ୍ୟା ପୁର ।
ଥାନ ଗ୍ରହିଲେ ସଖି ହେବୁ ଅନ୍ତର ଗୋ । ୧୭ । ଦୁଷ୍ଟ କଥା ମାନ
ଦୁଷଣ ହେବ । ଦଶରଥ ବଂଶରେ କଳଙ୍କ ହେବ ଯେ । ଦନ ସାରି-
ବ ମୁହିଁ କାହ୍ନା ବଦନ । ଦନଜଦନ ବାଧିଥିବ ମଦନ ଯେ । ୧୮ ।
ଧରଣୀ ମଣ୍ଡଳରେ ଆଜନ୍ମସତୀ । ଧନ୍ୟ ମୋ କର ଏବେ ହୋଇବୁ

ଦୁଃଖୀ ଗୋ । ମନରେ ନାହିଁ ମନେ ବମନ ପୁଣି । ଯଥ ଦିଗଲୋକରେ
ଗୋପାଳେ ନିନ୍ଦନ୍ତି ଶୁଣି ଗୋ । ୯ ॥ ନ ଜାଣି ବହୁ ଯାଉ ମୋ ଦେହ
ଛାୟା । ନିଠୁରିଆ ମୁଁ ଅଯୋଧ୍ୟା ବାମା ଗୋ । କୃପାଧିମାନଙ୍କର
ମୁଣ୍ଡମଣି । ନିଷ୍ଠୁର ହେଲେ ହେବି ମୁଁ ପାଟରାଣୀ ଗୋ । ୧୦ ॥
ପେଠା ସଙ୍ଘ ପାଳିବା ସିବା ମୁଁ ବନ । ପ୍ରାଣବଲ୍ଲଭ ପ୍ରେମା ନ କର
ମାନ ଗୋ । ପର୍ଣ୍ଣକୁଟିରେ ଦାନ କଷ୍ଟ ମୁହିଁ । ପଲ୍ଲବଟସୁ ଅଣି
ଶେଯ ସଜାଇ ଗୋ । ୧୧ ॥ ପାଦେ ପକାଇ ମୋତେ ବନ କରବ ।
ଫାଇଁ ଦୁଃଖସାଗରେ ଭସାଇ ଦେବ ହେ । ଫାଲଣା ହୋଇ ଅଉ
ଦିନେ ନୋହିବ । ଏମନ୍ତ ମୋ ଦୁଃଖ କାହା ଆଗେ କହିବ ଗୋ ।
। ୧୨ ॥ ବନମାନବମାନେ ଦେଖିଲେ ପୁଣି । ବୋଲିବେ ଯନ୍ତ୍ର
ସଙ୍ଗେ ଏକା ତରୁଣୀ ଗୋ । ବଳେ ଅଣିଲେ ଏଭଳି କାହା କୁମାରୀ ।
ଭୁଲି ଛନ୍ତି ଧନୁକରକୁ ଧରି ଗୋ । ୧୩ ॥ ଉଦ୍ଧତ ହେବ ଯେବେ
ଅଯୋଧ୍ୟାପତି । ଭିକ୍ଷୁକ ହୋଇ ଭ୍ରମି ବୁଲିବ କ୍ଷିତି ଗୋ । ଭରସା
ନାହିଁ ମୋର କା ପାଖ ଯିବ । ଭିକ୍ଷିବ କାନ୍ଦିଲ ସଙ୍ଗରେ ଥିବ ଯେ
। ୧୪ । ମନରୁ ଶୁଣ ସଖି ସେ କଥାମାନ । ମହିଳାମଣି ମୋର
ଝାଲା ରତନ ଗୋ । ମତ୍ତଗଜଗମନ ନୂଆ ବରସ । ମୁଖ ଦେଖିଲେ
ଦୁଃଖ ହୋଇବ ନାଶ ଗୋ । ୧୫ ॥ ଯୁବତୀମାନଙ୍କର କାନ୍ତି ଭୂଷଣ ।
ଯାବତ କଥା କହି ନୋହିବ ପୂର୍ଣ ଗୋ । ଜଗତରୁ ଯେବେ କଲ
ନିବୃତ୍ତ । ଜୀବନ ଯାଉ ମୋର ଶମନ ପାଶେ ହେ । ୧୬ । ସ୍ୱପ୍ନ
ପାହିଲେ ହେବ ଅଷ୍ଟମ ଦଶା । ରାଜବଚନେ ହିଁ ଆଉ ନ କର ଆଶା
ଗୋ । ଉଦ୍ଧ ବେଳକୁ ମୁହିଁ ନ ପାରେ ଜାଣି । ରଖି ନ ଦେବ
ମୋତେ ଗ୍ରାମରେ ପୁଣି ଗୋ । ୧୭ । ଲଗାଇ ଅଛି ମୋର ବହୁ
ଲେଖନ । ଲଭିବ ଅବଶ୍ୟ ମୁଁ କେ କରେ ଥାଇ ଗୋ । ଲଭେ ମୁଁ
ତମ୍ଭା ଦେଲି ଖେଳିଣ୍ଟି ଖେଳ । ଲଭିବ ଭୂମି ତନୁ ମୋ ଅଙ୍ଗେ ଯାଇ
ଯେ । ୧୮ । ବନ୍ଧୁମାନଙ୍କରେ ଅପୂର୍ବ ସ୍ଥାନ । କତ ଖାଦ ଲଭିବୁ

ଦେଖି ଏମାନ ଗୋ । ବଡ଼ଭାଇ ପୁରେ ଥାଅ ହର୍ଷିଙ୍କ ମେଳେ । ବନଜ-
ମୁଖୀ ବନ ନ ଯାଅ ହେଲେ ଗୋ । ୨୯ । ଶିବଧନୁ ଭାଙ୍ଗିଲ
ଅଯୋଧ୍ୟା ଯାଇ । ସୁମନମାଳ ଦେଇ ଗଳାରେ ନେଇ ଯେ । ଶରଣ
ହେଲେ ତାଙ୍କ ଚରଣତଳେ । ସମ୍ଭାଳ ନାଥ, ମୋତେ ବାହୁଯୁଗଳେ
ଯେ । ୩୦ ॥ ଜାନକୀ ଭ୍ରାତ ନାହିଁ ଅଯୋଧ୍ୟା ପୁର । ଶତ୍ରୁଘନ ଯାଇଛି
ମାଉଳ ଘର ଯେ । ମନ୍ଦମତୀ ଜାଣିଲେ ଯିବେ ଗୋଡ଼ାଇ । ଶଙ୍କ
କଳବେ ରାଜ୍ୟ ନେବେ ଛଡ଼ାଇ ଗୋ । ୩୧ । ସାରସଗମନା ଯେ
ବୋଇଲେ ବାଣୀ । ସଭବ ନାହିଁ କଥା କହିଲେ ପୁଣି ଗୋ ।
ଶ୍ରଦ୍ଧା ମଙ୍ଗଳ କଥା ହେବ ଏ ଗୀତ । ସଂସାରେ ଖ୍ୟାତ ହେଉ ଅମୃ
ତମୟ ଯେ । ୩୨ । ହସିଲେ ଶୁଣି ପ୍ରଭୁ ସୀତା ବଚନ । ହୃଦ ସତ୍ତ
ବଚନ ହୋଇବ ଏ ଅନ୍ତ ଯେ । ହରଷେ ଜନମାନେ ପଢ଼ିବେ ଛନ୍ଦ ।
ହୋଇବ ତାର ସବୁ ସୁଖ ସମ୍ପଦ ଗୋ । ୩୦ । କ୍ଷମା କର ମୋ ଦୋଷ
ଶ୍ରୀ ରଘୁନାଥ । କ୍ଷଣେ ଚିନ୍ତିଲେ ଅତି ରାମ ଲକ୍ଷ୍ମଣ ଯେ । କ୍ଷଣେ ରହି
ବୋଇଲେ ମୁଁ ଯିବ ବନ । ଶେଷରେ ଗୀତ ହୋଇ ରାମ ଲକ୍ଷ୍ମଣ
ଯେ । ୩୪ ॥

ସମ୍ପୂର୍ଣ୍ଣ



